# ମୌଲାନା
# ଅବୁଲକଲାମ୍ ଆଜାଦ

ଲେଖକ :

**ଶ୍ରୀ ରମାକାନ୍ତ ମିଶ୍ର,** ଏମ୍. ଏ.

ବି. ମ୍ୟୁଜ୍. ରାଷ୍ଟ୍ରଭାଷାରତ୍ନ

ଜନପ୍ରିୟ ପୁସ୍ତକାଳୟ

ବିନୋଦବିହାରୀ, କଟକ-୨

ରଚନା :
ଶ୍ରୀ ରମାକାନ୍ତ ମିଶ୍ର, ଏମ୍. ଏ.
ବି. ମ୍ୟୁଜ୍., ବସ୍ତ୍ରଭୂଷାରତ୍ନ

ପ୍ରକାଶକ :
ଏନ୍: ଏଲ୍. ଗୁପ୍ତା
ଜନଶକ୍ତି ପୁସ୍ତକାଳୟ
ବଖୋଦ ବଦ୍ଧାଖି, କଟକ-୨

ପୁନର୍ମୁଦ୍ରଣ : ୧୯୮୮

ମୁଦ୍ରକ :
ବିମଳା ପ୍ରେସ
ଅଲଣା ବଜାର, କଟକ-୨

ମୂଲ୍ୟ—ଟ ୧-୦୦

ମକ୍କାନଗରୀ ମୁସଲମାନମାନଙ୍କର ଏକ ପବିତ୍ର ସ୍ଥାନରୂପେ ଯାର ପୃଥିବୀରେ ପ୍ରସିଦ୍ଧ । ଏହିଠାରେ ୧୮୮୮ ମସିହା ନଭେମ୍ବର ୧୭ ତାରିଖ ଦିନ ମୌଲାନା ଅବୁଲକଲାମ ଆଜାଦ୍ ଜନ୍ମଗ୍ରହଣ କରିଥିଲେ ।

ତାଙ୍କ ପିତାଙ୍କ ନାମ ମୌଲାନା ଶେଖ୍ ଖଇରୁଦ୍ଦିନ । ସେ ଇସ୍ଲାମ୍ ଧର୍ମର ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । ଧର୍ମଗୁରୁ ରୂପେ ସମାଜରେ ସେ ଶ୍ରେଷ୍ଠ ଆସନ ଲାଭ କରିଥିଲେ । ଦେଶ ବିଦେଶରେ ମଧ୍ୟ ତାଙ୍କର ଅନେକ ଶିଷ୍ୟଥିଲେ । ପ୍ରଥମେ ସେ ଦିଲ୍ଲୀଠାରେ ଅବସ୍ଥାପିତ ହୋଇଥିଲେ । କିନ୍ତୁ ୧୮୫୭ର ବିଦ୍ରୋହ ପରେ ଇଂରେଜମାନେ ଦିଲ୍ଲୀ ଅଧିକାର କରିନେବାରୁ, ନିର୍ଦ୍ଦୋଷ ଦିଲ୍ଲୀ-ଅଧିବାସୀଙ୍କ ଉପରେ ଅତ୍ୟାଚାର କଲେ । ବହୁ ବାସିନ୍ଦାଙ୍କୁ ନିର୍ମମ ଭାବେ ହତ୍ୟାକରି ଦିଆଗଲା । ସେତିକବେଳେ ଶେଖ୍ ଖଇରୁଦ୍ଦିନ ତାଙ୍କ ପରିବାରର ପିଲା କବିଲାଙ୍କୁ ନେଇ ମକ୍କା ଚାଲିଯାଇଥିଲେ ।

ମୌଲାନା ଅବୁଲକଲାମ ଆଜାଦ୍‌ଙ୍କ ମାତା ମକ୍କାର ପ୍ରସିଦ୍ଧ ପଣ୍ଡିତ ମୌଲାନା ଶେଖ୍ ମହମ୍ମଦ ଜାହିର୍ ବେତରୀଙ୍କ କନ୍ୟା ଥିବେ । ସେ ମଧ୍ୟ ଧର୍ମଭାବାପନ୍ନା ଶିକ୍ଷିତା ମହିଳା ଥିଲେ ।

ମୌଲାନା ଆଜାଦ୍‌ଙ୍କ ପୂର୍ବ ବଂଶଧରଗଣ ମୁସ୍ଲିମ୍ ସମ୍ପ୍ରଦାୟର ସମ୍ମାନିତ ବଂଶଜରୂପେ ସୁପରିଚିତ । ମୋଗଲ ସମ୍ରାଟ ଆକବରଙ୍କ ସମୟରେ ତାଙ୍କର ଜଣେ ପୂର୍ବଜ ଥିଲେ ମୌଲାନା ଶେଖ୍ ଜମାଲୁଦ୍ଦିନ । ସେ ଇସ୍ଲାମ-ଧର୍ମର-ପ୍ରସିଦ୍ଧ ବିଦ୍ୱାନ ରୂପେ ଖ୍ୟାତିଅର୍ଜ୍ଜନ କରିଥିଲେ । ଇସ୍ଲାମ-ଧର୍ମର ପବିତ୍ର ଧର୍ମଗ୍ରନ୍ଥ 'ହଦିସ୍'

ଉପରେ ସେ ଯେଉଁ ଆଲୋଚନାମୂଳକ ପୁସ୍ତକ ରଚନା କରିଛନ୍ତି, ତାହା ଏବେ ମଧ୍ୟ ସର୍ବାଧିକ ପ୍ରାମାଣିକ ଗ୍ରନ୍ଥରୂପେ ବିବେଚିତ ହୋଇଥାଏ । ସମ୍ରାଟ ଆକବର, ଶେଖ୍ ଜମାଲୁଦ୍ଦିନ୍ ପ୍ରତିଭା ଏବଂ ପାଣ୍ଡିତ୍ୟରେ ମୁଗ୍ଧହୋଇ ତାଙ୍କୁ ତାଙ୍କ ଦରବାରରେ ସ୍ଥାନଦେଇ ଥିଲେ । ତାଙ୍କୁ ନିଜ ଦରବାରର ମୌଲବୀମାନଙ୍କର ମୁଖ୍ୟରୂପେ ଅବସ୍ଥାପିତ କରାଇବାକୁ ସମ୍ରାଟ ଚାହୁଁଥିଲେ । କିନ୍ତୁ ଏହି ସମ୍ମାନ ଜନକ ତଥା ମହତ୍ତ୍ୱପୂର୍ଣ୍ଣ ପଦବୀକୁ ଜମାଲୁଦ୍ଦିନ ସ୍ୱୀକାର କଲେ ନାହିଁ । କାରଣ ସମ୍ପର୍କୀୟ ମାମଲାରେ ଅନ୍ତିମ ନିର୍ଣ୍ଣୟର ଅଧିକାର ମୌଲବୀମାନେ ସମ୍ରାଟ ଆକବରଙ୍କୁ ସମର୍ପଣ କରି ଦେଇଥିଲେ । ତେଣୁ ସମ୍ରାଟ ଆକବରଙ୍କ ଅନୁରୋଧ ସତ୍ତ୍ୱେ ମଧ୍ୟ ସେ ରାଜିହେଲେ ନାହିଁ । ଶେଷରେ ସେ ଧର୍ମରକ୍ଷା ଉଦ୍ଦେଶ୍ୟରେ ଭାରତ ଛାଡ଼ି ମକ୍କା ଚାଲିଗଲେ ।

ତାଙ୍କର ଆଉ ଜଣେ ପୂର୍ବତନ ବଂଶଧର ଥିଲେ ମୌଲାନା ଶେଖ୍ ମହମ୍ମଦ । ସେ ମଧ୍ୟ ଇସ୍‌ଲାମ ଧର୍ମର ଶ୍ରେଷ୍ଠ ବିଦ୍ୱାନ ରୂପେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ଏବଂ ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କ ଦରବାରରେ ସ୍ଥାନ ପାଇଥିଲେ । କିନ୍ତୁ ସମ୍ରାଟ ତାଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ କେତେକ ମିଥ୍ୟା-ନିୟମକୁ ଲଙ୍ଘନ କରି ତାଙ୍କୁ ବନ୍ଦୀ କରିଥିଲେ । ବନ୍ଦୀଶାଳାରେ ସେ ଚାରି ବର୍ଷ କାଳ ଅସୀମ ଯନ୍ତ୍ରଣା ସହ୍ୟ କରିଥିଲେ ।

ଏହିପରି ଶ୍ରେଷ୍ଠ ସମ୍ମାନ, ପାଣ୍ଡିତ୍ୟ, ପ୍ରତିଭା ଏବଂ ନୈତିକତା-ପୂର୍ଣ୍ଣ ବଂଶରେ ମୌଲାନା ଆଜାଦ୍‌ଙ୍କର ଜନ୍ମ ହୋଇଥିଲା । ପୂର୍ବ ବଂଶଧରମାନଙ୍କ ଆଦର୍ଶ, ସମ୍ମାନ ଓ କର୍ତ୍ତବ୍ୟପରାୟଣତା ହିଁ ତାଙ୍କ ଜୀବନର ଦର୍ପଣ ସଦୃଶ ଥିଲା ।

ଭାରତ ମାତାର ପଦମର୍ଯ୍ୟାଦା ରକ୍ଷାକରିବାପାଇଁ ସେ ଆଜୀବନ ନିଜକୁ ଉତ୍ସର୍ଗ କରିଦେଇଥିଲେ । ମାତୃଭୂମିର ସେବା ହିଁ ତାଙ୍କ ଜୀବନର ପ୍ରଧାନ କର୍ତ୍ତବ୍ୟ ଥିଲା । କର୍ତ୍ତବ୍ୟ ପାଳନ ସକାଶେ ସେ କେବେହେଲେ ପଛଘୁଞ୍ଚା ଦେଇ ନାହାନ୍ତି । ସେବା କାର୍ଯ୍ୟରେ ଦୁଃଖ ଯନ୍ତ୍ରଣା ସହିବା ପାଇଁ ସେ କେବେହେଲେ ବିଚଳିତ ହୋଇ ନାହାନ୍ତି; ବରଂ ଜୀବନ ପଥରେ ଆସିଥିବା ସମସ୍ତ ବାଧା ବିଘ୍ନକୁ ଏଡ଼ାଇ ସେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହୋଇଥିଲେ ।

ତାଙ୍କର ପିଲାଦିନର ନାମ ଥିଲା ଅହମ୍ମଦ । କିନ୍ତୁ ତାଙ୍କୁ 'ଫିରୋଜ ବଖତ୍' ନାମରେ ଡାକୁଥିଲେ । ଏହାର ଅର୍ଥ ହେଉଛି ସୌଭାଗ୍ୟ ବା ଆଶା ଅଭିଳାଷର ଫଳ । ବାପାଙ୍କର ଏହି ନାଁ ଅନୁସାରେ ମଧ୍ୟ ତାଙ୍କର ଗୁଣ ଥିଲା । ସେ କେବଳ ବାପା-ମା'ଙ୍କ ଆଶା ଅଭିଳାଷକୁ ପୂରଣ କରି ନଥିଲେ, ବରଂ ମାତୃଭୂମିର ଆଶା ଆକାଂକ୍ଷାକୁ ମଧ୍ୟ ସେ କାର୍ଯ୍ୟକାରୀ କରାଇପାରିଥିଲେ । ବଡ଼ ହେବାପରେ ତାଙ୍କ ନାମ 'ଅବୁଲ୍ କଲମ' ହେଲା । ତାଙ୍କର ସାହିତ୍ୟିକ ନାମ 'ଆଜାଦ୍' । ଦେଶ-ବିଦେଶରେ ସେ ମୌଲାନା ଆଜାଦ ନାମରେ ହିଁ ସୁପରିଚିତ ।

୧୮୯୨ ଖ୍ରୀଷ୍ଟାବ୍ଦରେ ତାଙ୍କ ପିତା ପୁଣି ବନ୍ଧୁ ବାନ୍ଧବ ଏବଂ ଶିଷ୍ୟବର୍ଗଙ୍କ ଅନୁରୋଧ କ୍ରମେ ଭାରତକୁ ଫେରିଆସି କଲିକତା-ଠାରେ ବାସକଲେ । ସେତେବେଳକୁ ଆଜାଦ ଚାରିବର୍ଷର ଶିଶୁ । ତାଙ୍କର ଶିକ୍ଷାଦୀକ୍ଷା ନିଜଘରେ ହିଁ ଆରମ୍ଭ ହେଲା । ପିତାମାତା ଓ ବନ୍ଧୁମାନଙ୍କଦ୍ୱାରା ସେ ଶିକ୍ଷା ପାଇଲେ । ତାଙ୍କୁ ବାରବର୍ଷ ହେଲା ବେଳକୁ ସେ ଅନେକ ପ୍ରକାର ଭାଷା ଶିକ୍ଷା କରିପାରିଥିଲେ ।

ଆରବୀ, ପାର୍ଶୀ ଓ ଉର୍ଦ୍ଦୁ ଭାଷାରେ ସେ ବଡ଼ ବଡ଼ ଆଲୋଚନାତ୍ମକ ପୁସ୍ତକ ପାଠ କରି ମନେରଖୁଥିଲେ । ପିଲାବେଳୁ

ତାଙ୍କର ଏ ପ୍ରକାର ଦକ୍ଷତା ଦେଖି ପିତାମାତା ଓ ଗୁରୁଜନମାନେ ମଧ୍ୟ ବିସ୍ମିତ ହୋଇଥିଲେ । ଇତିହାସ, ଭୂଗୋଳ, ଦର୍ଶନ, ଗଣିତ ତର୍କଶାସ୍ତ୍ର ଇତ୍ୟାଦିରେ ମଧ୍ୟ ତାଙ୍କର ପ୍ରବଳ ଆଗ୍ରହ ଥିଲା । ବାର ତେର ବର୍ଷ ବୟସରେ ସେ ବହୁ ଜ୍ଞାନର ଅଧିକାରୀ ହୋଇପାରି-ଥିଲେ । ତାଙ୍କ ପିତାଙ୍କ ନିକଟକୁ ବଡ଼ ବଡ଼ ପିଲାମାନେ ସେତେ-ବେଳେ ବିଦ୍ୟା ଅଧ୍ୟୟନ କରିବାକୁ ଆସୁଥିଲେ । ସେହି ଅଧିକ ବୟସର ପିଲାମାନଙ୍କୁ ମଧ୍ୟ ଆଜାଦ ବେଳେବେଳେ ପାଠ ପଢ଼ାଇ ଦେଇ ପାରୁଥିଲେ । ତାଙ୍କୁ କ୍ରମେ ସତର ବର୍ଷ ହେଲା । ସେ ୧୯୦୫ ମସିହାରେ ଉଚ୍ଚଶିକ୍ଷା ଲଭ କରିବାପାଇଁ ମିଶର ଗଲେ । ସେଠାରେ କାହିରଠାରେ ଥିବା ଅଲ-ଅଜହର ବିଶ୍ୱବିଦ୍ୟାଳୟରେ ଦୁଇବର୍ଷ ପଢିଲେ । ତାଙ୍କ ପ୍ରତିଭା ଦେଖି ସେଠାକାର ଅଧ୍ୟାପକମାନେ ମଧ୍ୟ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ ସମ୍ପର୍କରେ ଚିନ୍ତା କରିପାରିଥିଲେ ।

ଇସ୍‌ଲାମ ଧର୍ମ ସମ୍ବନ୍ଧରେ ମଧ୍ୟ ମୌଲାନା ଆଜାଦ ବହୁ ପୁସ୍ତକ ପାଠକରି ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ମିଶରରୁ ଶିକ୍ଷା ଶେଷକରି ପୁଣି ଭାରତକୁ ଆସିଲେ । ୧୯୦୯ ବେଳକୁ ତାଙ୍କ ପିତାଙ୍କର ଦେହାବସାନ ଘଟିଥିଲା । ଏହାପରେ ସେ ପିତାଙ୍କ ସଦୃଶ ଲୋକମାନଙ୍କୁ ମୁସ୍‌ଲିମ ଧର୍ମ ସମ୍ପର୍କରେ ଶିକ୍ଷା ପ୍ରଦାନ କରୁଥାନ୍ତି । ସାହିତ୍ୟ ପ୍ରତି ତାଙ୍କର ଗଭୀର ମମତା ପିଲାଦିନୁ ରହିଥିଲା । ବିଭିନ୍ନ ପ୍ରବନ୍ଧ ଏବଂ ଆଲୋଚନାରେ ମଧ୍ୟ ସେ ମନୋନିବେଶ କରୁଥିଲେ ।

୧୯୧୨ ମସିହାରେ ସେ 'ଅଲ୍-ହିଲାଲ୍' ନାମକ ଏକ ଉର୍ଦ୍ଦୁ ସାପ୍ତାହିକ ପତ୍ରିକାର ସମ୍ପାଦନା ଏବଂ ପ୍ରକାଶନ ଆରମ୍ଭ କଲେ । ସେତେବେଳେ ଏହି ପତ୍ରିକାର ପ୍ରଚୁର ଖ୍ୟାତି ଥିଲା । ଏଥିରେ ଧାର୍ମିକ ଶିକ୍ଷା ଏବଂ ଏକତା ସମ୍ପର୍କରେ ରଚନା ସବୁ ପ୍ରକାଶ

ପାଇଲା । ସମ୍ପାଦନା କାର୍ଯ୍ୟରେ ସେ ନିରପେକ୍ଷତା ଅବଲମ୍ବନ କରି ଦେଶର ଏବଂ ଲୋକଙ୍କର ଅଭାବ ଅସୁବିଧା ଆଦିକୁ ମୁଖ୍ୟ ସ୍ଥାନ ଦେଲେ । ଭାରତର ଅତୀତ ଗୌରବ ସହିତ ବିଦେଶୀ ସରକାରଙ୍କ ଅନ୍ୟାୟ ଅତ୍ୟାଚାରର ତୁଳନାତ୍ମକ ଲେଖାସବୁ ସେଥିରେ ବାହାରିଲା । ତଦ୍ଦ୍ୱାରା ମୌଲାନା ଆଜାଦ ଓ 'ଅଲ୍-ହିଲାଲ୍' ଉଭୟେ ଇଂରେଜ ସରକାରଙ୍କ ଶତ୍ରୁ ହେଲେ । ତଥାପି ପୂର୍ବପରି ସେହି ଆଲୋଚନା ପତ୍ରିକାରେ ଚାଲିଥାଏ । କିନ୍ତୁ ୧୯୧୫ରେ ଇଂରେଜ ସରକାର ଭାରତ ସୁରକ୍ଷା ଆଇନ ଦର୍ଶାଇ ତାହାର ପ୍ରକାଶନ ବନ୍ଦ କରିଦେଲେ ।

୧୯୧୬ ମସିହାରେ ପୁଣି 'ଅଲ୍-ବଲାଗ' ନାମକ ଏକ ପତ୍ରିକାର ସମ୍ପାଦନା ଏବଂ ପ୍ରକାଶନ ମୌଲାନା ଆଜାଦ୍ ଆରମ୍ଭ କଲେ । ଏହି ପତ୍ରିକାଟି ମଧ୍ୟ 'ଅଲ୍-ହିଲାଲ୍' ସ୍ୱରୂପ ଥିଲା । ଏଥିରେ ମଧ୍ୟ ଧର୍ମନୀତି, ଦେଶର ଆବଶ୍ୟକତା ସମ୍ପର୍କରେ ଲେଖାମାନ ପ୍ରକାଶିତ ହେଲା । ନିର୍ଭୀକ ରୂପେ ଏହାର ସମ୍ପାଦକୀୟରେ ମୁଖ୍ୟ ସମସ୍ୟାଗୁଡ଼ିକୁ ମୌଲାନା ଆଜାଦ୍ ଲେଖୁଥାନ୍ତି । କେତେ ମାସପରେ ଏହାର ପ୍ରକାଶନକୁ ମଧ୍ୟ ସରକାର ବନ୍ଦ କରିଦେଲେ । ତା' ସହିତ ତାଙ୍କୁ ମଧ୍ୟ ବଙ୍ଗଳା ରାଜ୍ୟରୁ ତଡ଼ି ଦିଆଗଲା । ପଞ୍ଜାବ, ବମ୍ବେ ଏବଂ ଉତ୍ତର ପ୍ରଦେଶକୁ ସେ ଯାଇ ପାରିବେ ନାହିଁ ବୋଲି ପୂର୍ବରୁ ସରକାର ଆଦେଶ ଦେଇଥିଲେ । ତେଣୁ ବିହାରର ରାଞ୍ଚି ସହରକୁ ଯାଇ ସେ ବାସକଲେ । ତଥାପି ମଧ୍ୟ ଇଂରେଜ ସରକାର ସ୍ଥିର ଏବଂ ସନ୍ତୁଷ୍ଟ ହୋଇ ରହିପାରିଲେ ନାହିଁ ।

କାରଣ ସେ ଯେଉଁଠିକି ଗଲେ ମଧ୍ୟ ନିଜର ନିର୍ଭୀକ ମତ ଲୋକଙ୍କୁ ଶୁଣାଇବେ । ସଭା, ସମିତିରେ ଯୋଗଦେବେ । ତଦ୍ଦ୍ୱାରା

ସରକାରଙ୍କର ବଦନାମ ହେବ । ଏହି ଦୃଷ୍ଟିରୁ ତାଙ୍କୁ ନିଜଘରେ ହିଁ ସରକାର ନଜରବନ୍ଦୀ କରି ରଖିଲେ । ଏହି ନଜରବନ୍ଦୀ ଦଣ୍ଡ ୧୯୨୦ ପର୍ଯ୍ୟନ୍ତ ସେ ଭୋଗିଲେ । ଏହି ସମସ୍ତ ଭିତରେ ସେ ଦୁଇଟି ମହତ୍ତ୍ୱପୂର୍ଣ୍ଣ ପୁସ୍ତକ ରଚନା କରିଥିଲେ । ସେଥିରେ ନିଜ ଜୀବନର ଅନୁଭୂତି ଉର୍ଦ୍ଦୁ ଭାଷାରେ ଲେଖିଲେ । ତାହାର ନାମ 'ଗୁବାରେ-ଖାତିର' । ଏହାର ଭାଷା ତଥା ଶୈଳୀ ଅତି ଉଚ୍ଚ ଧରଣର ଏବଂ ଉର୍ଦ୍ଦୁ ଭାଷାର ଏହା ଏକ ପ୍ରସିଦ୍ଧ ଗ୍ରନ୍ଥ । ଦ୍ୱିତୀୟ ପୁସ୍ତକଟି 'କୁରାନ୍ ସରିଫ୍' ଉପରେ ଏକ ଆଲୋଚନା ପୁସ୍ତକ । ଏଥିରେ ମୌଲାନା ଆଜାଦ୍‌ଙ୍କ ଧର୍ମଶାସ୍ତ୍ର ଉପରେ ଦକ୍ଷତା ଏବଂ ଦାର୍ଶନିକତାର ଉଦାହରଣ ମିଳିଥାଏ ।

ଉର୍ଦ୍ଦୁ ସାହିତ୍ୟରେ ତାଙ୍କର ପାରଦର୍ଶିତା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହେଉଥିଲେ । ସେ ଯଦି ରାଜନୀତି କ୍ଷେତ୍ରକୁ ଆସି ନଥାନ୍ତେ ତେବେ ଉର୍ଦ୍ଦୁ ସାହିତ୍ୟ ଭଣ୍ଡାରକୁ ତାଙ୍କର ଦାନ ଅତୁଳନୀୟ ହୋଇଥାନ୍ତା । ପିଲାଦିନୁ ସେ ଭାଷଣ ଦେବାକୁ ଭଲ ପାଉଥିଲେ । ତେଣୁ ପିଲାବେଳେ ଗୋଟାଏ ଉଚ୍ଚ ସ୍ଥାନରେ ଠିଆ ହୋଇ ତାଙ୍କ ମନକୁ ଯାହା ଆସିଲା ଅନର୍ଗଳ କହିଯାଆନ୍ତି । ତାଙ୍କ କଥାକୁ ତାଙ୍କର ବଡ଼ ଭଉଣୀ ଦୁଇଟି ଠିଆ ହୋଇ ଶୁଣନ୍ତି । ଏହା ତାଙ୍କର ଏକ ପ୍ରକାର ଖେଳ ହୋଇଥାଏ । ପିଲାଦିନର ଏ ପ୍ରକାର ଅଭ୍ୟାସରୁ ଭବିଷ୍ୟତରେ ସେ ଜଣେ ସୁବକ୍ତା ହୋଇପାରିଥିଲେ ।

ନଜରବନ୍ଦୀରୁ ମୁକ୍ତ ହେବାପରେ ମୌଲାନା ଆଜାଦ୍ ମହାତ୍ମାଗାନ୍ଧୀଙ୍କ ପଦାଙ୍କ ଅନୁସରଣ କଲେ । ସେ କଂଗ୍ରେସରେ ଯୋଗଦେଲେ । ମହାତ୍ମାଗାନ୍ଧୀଙ୍କ ସତ୍ୟାଗ୍ରହର ସନ୍ଦେଶ ସେ ଚାରିଆଡ଼େ ବୁଲିବୁଲି ପ୍ରଚାର କଲେ । ଭାରତର ବଭିନ୍ନ ସ୍ଥାନକୁ ଯାଇ ଭାଷଣ ଦେଲେ । ଭାରତୀୟ ସ୍ୱାଧୀନତା ସକାଶେ ମୁସଲମ୍

ଜନତାଙ୍କ ମଧ୍ୟରେ ଜାଗରଣ ସୃଷ୍ଟି ହେଲା । ତାଙ୍କର ପାଣ୍ଡିତ୍ୟ ପୂର୍ଣ୍ଣ ଭାଷଣ ଶୁଣି ଇସ୍‌ଲାମ ଧର୍ମର ଶିକ୍ଷିତ ସମାଜ ଖୁବ୍ ପ୍ରଭାବିତ ହେଲେ । ମୁସଲିମ୍ ସମାଜର ଏକ ବୈଠକ ଲାହୋରଠାରେ ବସିଲା । ସେଥିରେ ମୌଲାନା ଆଜାଦଙ୍କୁ ମୁସଲମାନମାନଙ୍କର ଇମାମ୍ ( ପ୍ରଧାନ ) କରିବାକୁ ସମସ୍ତେ ଠିକ୍ କଲେ । କିନ୍ତୁ ନିଜେ ଆଜାଦ ଏ କଥା ସ୍ୱୀକାର କଲେନାହିଁ । ଧର୍ମର ଅଗ୍ରଗତିରେ ତାଙ୍କପରି ଜଣେ ବ୍ୟକ୍ତି ଦାୟିତ୍ୱ ଗ୍ରହଣ କଲେ ସେଥିରେ ବାଧା ଉପୁଜିବ ବୋଲି ସେ କହିଥିଲେ ।

କଂଗ୍ରେସର ସତ୍ୟାଗ୍ରହ ଚାଲିଥାଏ । ଇଂରେଜ ସରକାରଙ୍କ ଜୁଲୁମ୍ ମଧ୍ୟ କିଛି କମ୍ ନଥାଏ । ୧୯୨୧ରେ ବହୁ ନେତା ଗିରଫ ହେଲେ । ତାଙ୍କ ସଙ୍ଗେ ମୌଲାନା ଆଜାଦ ମଧ୍ୟ ବନ୍ଦୀ ହେଲେ । ତାଙ୍କୁ ଗୋଟିଏ ବର୍ଷ କାରାଦଣ୍ଡ ମିଳିଲା । ଏହି ମୋକଦ୍ଦମା ସମୟରେ ଅଦାଲତରେ ସେ ଯେଉଁ ବୟାନ ଦେଇଥିଲେ ସେଥିରୁ ତାଙ୍କର ଦେଶପ୍ରେମ ଏବଂ ନିର୍ଭୀକତାର ପରିଚୟ ସହଜରେ ମିଳିଥାଏ ।

ସେ ଅଦାଲତରେ କହିଥିଲେ—ଆମର ନ୍ୟାଯ୍ୟଦାବୀ ସକାଶେ ଆମେ ଆଜି ବନ୍ଦୀ । ଅଦାଲତରେ ପ୍ରକୃତରେ ନ୍ୟାୟ ମିଳିନଥାଏ । କେବଳ କେତେକ ମିଥ୍ୟା ପ୍ରମାଣ ମିଳିଗଲେ ନିର୍ଦ୍ଦୋଷ ମଣିଷ ବି ଦଣ୍ଡିତ ହୁଏ । ମହାତ୍ମା ଯୀଶୁଖ୍ରୀଷ୍ଟ ମଧ୍ୟ ଦିନେ ଏମିତି ଅଦାଲତରେ ଦଣ୍ଡିତ ହୋଇଥିଲେ । ଦାର୍ଶନିକ ସକ୍ରେଟିସ୍ ମହାନ୍ ବୈଜ୍ଞାନିକ ଗାଲିଲିଓଙ୍କୁ ମଧ୍ୟ ଅଦାଲତ ସାମନାରେ ଠିଆ ହେବାକୁ ପଡ଼ିଥିଲା । ସେମାନଙ୍କୁ ଯେଉଁ ଦଣ୍ଡ ମିଳିଥିଲା ତାହା କଥାରେ କହିବା କଷ୍ଟକର । ହିନ୍ଦ୍ ସ୍ଥାନରେ ନିଜର ହକ୍‌କୁ ( ଅଧିକାର ) ହାସଲ କରିବା ପାଇଁ ଆନ୍ଦୋଳନ ସୃଷ୍ଟି ହୋଇସାରିଛି । ଏହି ଆନ୍ଦୋଳନ ସରକାରଙ୍କ ପକ୍ଷରେ ଅତି ଅସହ୍ୟ ହୋଇପାରେ । କିନ୍ତୁ ମୁଁ ଜାଣେ

ସ୍ୱାଧୀନତା ମଣିଷର ଏକ ଜନ୍ମଗତ ଅଧିକାର । ଗୋଲାମର ବେଡ଼ି ପିନ୍ଧି ବଞ୍ଚିବାକୁ କେହି ଚାହେଁନାହିଁ । ନିଜ ମୁଲକକୁ ଗୋଲାମୀରୁ ମୁକ୍ତ କରିବା ମୋର କର୍ତ୍ତବ୍ୟ ।

ସେ ଯାହା ଚିନ୍ତା କରୁଥିଲେ ଏବଂ କହୁଥିଲେ ତାହା ହିଁ ଜୀବନସାରା ପାଳନ କରି ଆସିଥିଲେ । ବିଭିନ୍ନ ପ୍ରକାର ପ୍ରଲୋଭନ ତାଙ୍କୁ କର୍ତ୍ତବ୍ୟ କ୍ଷେତ୍ରରେ ବିଚଳିତ କରିପାରି ନଥିଲା । ସେ ପ୍ରକୃତରେ ଥିଲେ ଭାରତମାତାର ଜଣେ ଶ୍ରେଷ୍ଠ ପୂଜାରୀ । ମୁସଲିମ୍ ଲିଗ୍‌ର ଅନେକ ପ୍ରଲୋଭନକୁ ସେ ଖାତିର କରି ନ ଥିଲେ ଏବଂ ଭାରତ ପ୍ରତି ମମତା ତାଙ୍କର ଶେଷଜୀବନ ପର୍ଯ୍ୟନ୍ତ ରହିଥିଲା ।

୧୯୨୩ ମସିହା ବେଳକୁ କଂଗ୍ରେସ ଦୁଇଟି ଦଳରେ ବିଭକ୍ତ ହୋଇସାରିଥିଲା । ଗୋଟିଏ ଦଳ କାଉନ୍‌ସିଲ୍‌କୁ ଯିବା ପକ୍ଷରେ ଥିଲା ଏବଂ ଅନ୍ୟ ଦଳଟି ମହାତ୍ମାଗାନ୍ଧିଙ୍କ ମତ ଅନୁସାରେ ସରକାରଙ୍କୁ କୌଣସି ପ୍ରକାର ସହଯୋଗ କରିବା ପାଇଁ ପ୍ରସ୍ତୁତ ନ ଥିଲା । ୧୯୨୩ ସେପ୍‌ଟେମ୍ବର ମାସରେ ଦିଲ୍ଲୀଠାରେ କଂଗ୍ରେସର ଏକ ଅଧିବେଶନ ବସିଲା । ଏହି ଅଧିବେଶନର ସଭାପତି ଥିଲେ ମୌଲାନା ଆଜାଦ୍ ।

ଏ ଅବସରରେ ସେ କହିଥିଲେ – ଦେଶର ସମଗ୍ର ଜନତା ସ୍ୱାଧୀନତା ପାଇବାକୁ ହକ୍‌ଦାର । ସେମାନେ ତାଙ୍କ ସୁବିଧା ଅନୁସାରେ ନିଜେ ନିଜକୁ ଶାସନ କରିବେ । ତାଙ୍କ ଅଭାବ ଅଭି-ଯୋଗ ନିଜେ ବୁଝିବେ । ନିଜ ସମସ୍ୟାଗୁଡ଼ିକର ସମାଧାନ ନିଜେ କରିବେ । କୌଣସି ବିଦେଶୀ ଶକ୍ତି ଏ ଦେଶର ଆବଶ୍ୟକତାକୁ ହୃଦୟଙ୍ଗମ କରିପାରିବେ ନାହିଁ । ଏହା ସାଧନା ଓ ସଂସ୍କୃତିର ଦେଶ । ଏ ଦେଶର ଅତୀତ ଗୌରବ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି ।

ଜୋର୍ ଜୁଲୁମ କରି କେହି ଅଧିକାର ସାବ୍ୟସ୍ତ ଚିରଦିନ ପାଇଁ କରିପାରେ ନାହିଁ । ଅତ୍ୟାଚାର କରି ପ୍ରଜାମାନଙ୍କୁ ଚିରଦିନ ଶାସନ କରାଯାଇପାରେ ନା । ଦିନେ ନିଶ୍ଚୟ ଜନତା ମୌଳିକ ଅଧିକାର ହାସଲ କରିବ । ଦେଶର ସେବା କରିବାକୁ ହେଲେ ମିଳିତ ଉଦ୍ୟମ କରିବା ଆବଶ୍ୟକ । ଗୋଟିଏ ଦଳ ଦଳ ଭାଗ ହୋଇଗଲେ ଶକ୍ତି ହ୍ରାସ ପାଇଥାଏ ସିନା, ବୃଦ୍ଧି ହୁଏ ନାହିଁ । ତେଣୁ କଂଗ୍ରେସକୁ ଭାଗ ଭାଗ କରି ଲାଭ କିଛି ନାହିଁ । ସମସ୍ତେ ନିଃସ୍ୱାର୍ଥପର ଭାବେ ମାତୃଭୂମିର ସେବା କରିବାକୁ ଅଗ୍ରସର ହେଲେ ନିଶ୍ଚୟ ଦିନେ ପୁଣି ଅତୀତର ଗୌରବ ଆମ ହାତକୁ ଫେରି ଆସିବ ।

ଅଧିବେଶନରେ ଏହି ଭାଷଣର ମୂଲ୍ୟ ଯଥେଷ୍ଟ ଥିଲା । ଏତଦ୍ଦ୍ୱାରା କଂଗ୍ରେସର ବିକ୍ଷିପ୍ତ ଶକ୍ତି ପୁଣି ଏକତ୍ରିତ ହେଲା । ମୌଲାନା ଆଜାଦଙ୍କ ଆହ୍ୱାନକ୍ରମେ ନେତା ଏବଂ ସମାଜସେବୀମାନେ ପୁଣି ନୂତନ ଉତ୍ସାହରେ ମାତି ଉଠିଲେ । କଂଗ୍ରେସରେ ଏକତା ବୃଦ୍ଧି ପାଇଲା । ଆଜାଦ୍‌ଙ୍କ ବାଣୀ ଏବଂ ଭାଷଣ ଦ୍ୱାରା ଲୋକଙ୍କ ମନରେ ସ୍ୱାଧୀନତାର ଆଶା ସଞ୍ଚାରିତ ହେଲା ।

ସତ୍ୟାଗ୍ରହ ଆନ୍ଦୋଳନ ଦେଶର ଚାରିଆଡ଼େ ଖେଳିଯାଇ ଥାଏ । ୧୯୩୦ ମସିହାରେ କଂଗ୍ରେସର ସଭାପତି ଥିଲେ ପଣ୍ଡିତ ଜବାହାରଲାଲ ନେହେରୁ । ସରକାରଙ୍କ ବିରୋଧୀ ଆଚରଣ ଯୋଗୁଁ ସେ ମଧ୍ୟ ଗିରଫ ହେଲେ । ତାଙ୍କ ସ୍ଥାନରେ ମୌଲାନା ଆଜାଦଙ୍କୁ କଂଗ୍ରେସର ସଭାପତି ଆସନରେ ନିଯୁକ୍ତ କରାଗଲା । ସେ କାପୁରୁଷ ନ ଥିଲେ । କେତେକ ସ୍ଥାନରେ ତାଙ୍କର ଅଗ୍ନିବର୍ଷୀ ଭାଷଣ ଇଂରେଜ ସରକାରଙ୍କ ଚକ୍ଷୁଶୂଳ ହେଲା । ସରକାରଙ୍କର ଆପତ୍ତି ଜନକ କାର୍ଯ୍ୟସବୁକୁ ସେ ନିର୍ଭୀକ ରୂପେ ସଭା-ସମିତିରେ

ଆଲୋଚନା କରୁଥିଲେ । ଅଳ୍ପଦିନ ପରେ ସେ ମଧ୍ୟ ଗିରଫ ହେଲେ ।

ପ୍ରତ୍ୟେକ କାର୍ଯ୍ୟରେ ମୌଲାନା ଆଜାଦଙ୍କର ଅସାଧାରଣ ଦକ୍ଷତା ଥିଲା । ତାଙ୍କର ଦୁରଦର୍ଶିତା ଦେଖି ମହାତ୍ମାଗାନ୍ଧୀ ମଧ୍ୟ ପ୍ରତି କଥାରେ ତାଙ୍କ ସହ ପରାମର୍ଶ କରିବାକୁ ଭଲ ପାଉଥିଲେ । ରାଜନୀତିର ନୀତି ନିୟମକୁ ସେ ଠିକ୍‌ରୂପେ ପରିଚାଳନା କରିବାର କ୍ଷମତା ଅର୍ଜନ କରିଥିଲେ ।

୧୯୩୭ ମସିହାରେ ଭାରତର ଆଠଟି ପ୍ରଦେଶରେ କଂଗ୍ରେସୀ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଏହି ପ୍ରଦେଶଗୁଡ଼ିକୁ ଶାସନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ କଂଗ୍ରେସ ଏକ କମିଟି ଗଠନ କରିଥିଲା । ଏହି କମିଟିରେ ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଏବଂ ମୌଲାନା ଆଜାଦ୍‌ଙ୍କୁ ରଖାଯାଇଥିଲା ।

ସେହି ସମୟରେ ମୁସଲମାନ ସମ୍ପ୍ରଦାୟର ସିହା ଏବଂ ସୁନ୍ନୀମାନଙ୍କ ମଧ୍ୟରେ ଭୟଙ୍କର ଗଣ୍ଡଗୋଳ ଲାଗିଥାଏ । ଉତ୍ତର ପ୍ରଦେଶର ଏହି ମୁସଲମାନମାନେ ମୌଲାନା ଆଜାଦଙ୍କ ମତାମତକୁ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ । ସମିତିର ସଦସ୍ୟରୂପେ ସେ ସିହା ସୁନ୍ନୀଙ୍କ ଗଣ୍ଡଗୋଳକୁ ଖୁବ୍ ଚତୁରତାର ସହ ସମାଧାନ କରିପାରିଥିଲେ । ତାପରେ ସେହି ମୁସଲମାନମାନେ ଆଜାଦ୍‌ଙ୍କ ଅନୁଗାମୀ ହୋଇ କଂଗ୍ରେସରେ ଯୋଗ ଦେଇଥିଲେ ।

ବିହାର ରାଜ୍ୟରେ କୃଷକ ଏବଂ ଜମିଦାରଙ୍କ ମଧ୍ୟରେ ଜମିର ମାଲିକାନା ଓ କୃଷିକାର୍ଯ୍ୟର ଅଂଶଲାଭ ଉପରେ ଆଗରୁ ସଙ୍ଘର୍ଷ ଲାଗି ରହିଥାଏ । ମୌଲାନା ଆଜାଦ୍ ନିଜେ ଗାଁ ଗାଁ ବୁଲି କୃଷକ ମାନଙ୍କୁ ଏକତ୍ରିତ କଲେ । ଜମିଦାରମାନଙ୍କ ନିକଟକୁ ଯାଇ

ଶାନ୍ତିପୂର୍ଣ୍ଣ ଉପାୟରେ ଏହାର ସମାଧାନ କରିବାକୁ ସେ ସମର୍ଥ ହୋଇପାରିଥିଲେ । ପ୍ରତି କାର୍ଯ୍ୟରେ ତାଙ୍କର ସୂକ୍ଷ୍ମ ବୁଦ୍ଧି ଏବଂ ବହୁଦୂରଦର୍ଶିତା ହିଁ ତାଙ୍କୁ ସଫଳତାର ମାର୍ଗରେ ପ୍ରବର୍ତ୍ତିତ କରୁଥିଲା ।

ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ବହୁ ସମସ୍ୟା ସେତେବେଳକୁ ମୁଣ୍ଡ ଟେକି ଲୋକଙ୍କର ଅଶାନ୍ତିର କାରଣ ହୋଇଥାଏ । ଲୋକେ ଘୋର ଦୁଃଖରେ କାଳାତିପାତ କରୁଥାନ୍ତି । ଏ ସଂବାଦ ମୌଲାନା ଆଜାଦ୍‌ଙ୍କ କାନକୁ ଯାଏ । ସେ ଆଉ ସ୍ଥିର ରହି ନ ପାରି ସେହି ସବୁ ଅଞ୍ଚଳକୁ ଯାଆନ୍ତି । ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ଶୁଣିବା ପରେ ନିଜ ସାମର୍ଥ୍ୟ ଅନୁସାରେ ତାହାର ସମାଧାନ କରି ପୁଣି ଫେରିଆସନ୍ତି ।

୧୯୪୨ରେ କଂଗ୍ରେସର 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନରେ ମୌଲାନା ଆଜାଦ୍‌ଙ୍କ ଭୂମିକା ଅତିବ ଗୁରୁତ୍ୱପୂର୍ଣ୍ଣ ଥିଲା । ତେଣୁ ଅନ୍ୟାନ୍ୟ ନେତାମାନଙ୍କ ସହିତ ସେ ମଧ୍ୟ ଗିରଫ ହୋଇଥିଲେ । ତାଙ୍କୁ ଅହମଦନଗର ଜେଲ୍ଲାରେ ବନ୍ଦୀ କରି ରଖାଗଲା । ସେତେବେଳକୁ ତାଙ୍କ ପତ୍ନୀଙ୍କ ସ୍ୱାସ୍ଥ୍ୟ ଆଦୌ ଭଲ ନ ଥାଏ । ତେଣୁ କାରାଗାରରେ ନିଶ୍ଚିନ୍ତରେ ରହିପାରିଲେ ନାହିଁ । ମାତୃଭୂମିର ସେବାପାଇଁ ସେ ହସି ହସି ବନ୍ଦୀଶାଳାକୁ ଗଲେ ସିନା, ପତ୍ନୀଙ୍କ ସ୍ୱାସ୍ଥ୍ୟ କଥା ତାଙ୍କୁ ବେଶୀ ବ୍ୟଗ୍ର କରି ପକାଉଥିଲା । ଏହି କାରାବାସ ତାଙ୍କ ଜୀବନରେ ଏକ ଦୁର୍ଦ୍ଦଶାର ପରିବେଶ ଟାଣି ଆଣିଲା । ତାଙ୍କ ପ୍ରିୟତମା ପତ୍ନୀ ତାଙ୍କୁ ଏକା ଛାଡ଼ିଦେଇ ଅମର ଧାମକୁ ଚାଲିଗଲେ···

ଦୀର୍ଘ ତିନି ବର୍ଷ କାରାଦଣ୍ଡ ଭୋଗିବା ପରେ ୧୯୪୫ ମସିହାରେ ମୌଲାନା ଆଜାଦ୍ ମୁକ୍ତ ହୋଇଥିଲେ । ପୁଣି ସେ କଂଗ୍ରେସରେ

ଅଧ୍ୟକ୍ଷ ରୂପେ ନିର୍ବାଚିତ ହେଲେ । ଏହି ଅବସରରେ ସେ ସିମଳା କନ୍‌ଫରେନ୍‌ସରେ ଅଂଶ ଗ୍ରହଣ କରିଥିଲେ ।

ମୁସ୍‌ଲିମ୍ ଲିଗ୍‌ର ଅଧ୍ୟକ୍ଷ ଥିଲେ ମହମ୍ମଦ ଅଲି ଜିନ୍ନା । କନ୍‌ଫରେନ୍‌ସକୁ ବ୍ରିଟିଶ ସରକାରଙ୍କ ପ୍ରତିନିଧି ଷ୍ଟାଫୋର୍ଡ଼ କ୍ରିପ୍‌ସ ଆସିଥିଲେ । ଏହି ଦୁଇ ଜଣଙ୍କ ସହିତ ମୌଲାନା ଆଜାଦ ଭାରତର ସ୍ୱାଧୀନତା ସମ୍ପର୍କରେ କଥାଭାଷା କରିଥିଲେ । ଭାରତୀୟମାନଙ୍କର ନ୍ୟାଯ୍ୟଦାବୀ ପୂରଣ ନ କଲେ ଭବିଷ୍ୟତରେ ଅବସ୍ଥା ସଙ୍କଟ-ଜନକ ହେବ ବୋଲି ମଧ୍ୟ ସେ କହିଥିଲେ । ବର୍ତ୍ତମାନ ଭାରତୀୟ ଜନତାଙ୍କ ଦୁର୍ଦ୍ଦଶା, ଅଭାବ ଅନଟନ, ଅଶିକ୍ଷା, କୁଶିକ୍ଷା, ସାମାଜିକ ବିଶୃଙ୍ଖଳା ଆଦି ସମ୍ପର୍କରେ ଆଜାଦ୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କ ସହିତ ସବିଶେଷ ଆଲୋଚନା କଲେ । ଏହି କନ୍‌ଫରେନ୍‌ସ ଖୁବ ଶାନ୍ତିମୟ ପରିବେଶରେ ଚାଲିଥିଲା । କିନ୍ତୁ ମହମ୍ମଦ ଅଲି ଜିନ୍ନାଙ୍କ ଜିଦ୍ ଏବଂ ଗୋଳମାଳିଆ ଆଲୋଚନା ଯୋଗୁଁ ତାହା ସଫଳ ହୋଇ ପାରିଲା ନାହିଁ ।

୧୯୪୬ ମସିହାରେ ପୁଣି ଏକ କନ୍‌ଫରେନ୍‌ସ ହେଲା । ବ୍ରିଟିଶ ମନ୍ତ୍ରୀମଣ୍ଡଳର ତିନିଜଣ ସଦସ୍ୟ ଏଥିରେ ଯୋଗ ଦେଇଥିଲେ । ସେମାନେ ହେଉଛନ୍ତି ଲର୍ଡ଼ ପେଥିକ ଲରେନ୍‌ସ, ସାର ଷ୍ଟାଫୋର୍ଡ଼ କ୍ରିପ୍‌ସ ଏବଂ ଏ. ଭି. ଆଲେକ୍‌ଜାଣ୍ଡାର । ଏଥର ମଧ୍ୟ ମୌଲାନା ଆଜାଦ୍ କଂଗ୍ରେସର ସଭାପତି ରୂପେ କନ୍‌ଫରେନ୍‌ସରେ ଯୋଗ ଦେଇଥିଲେ । ସେତେବେଳେ ସେ ପୁନର୍ବାର ଭାରତୀୟ ଜନତାଙ୍କ ଦୁର୍ଦ୍ଦଶା ସମ୍ପର୍କରେ ଆଲୋଚନା କଲେ । ସ୍ୱାଧୀନତା ହିଁ ଭାରତୀୟ-ମାନଙ୍କର ଏକମାତ୍ର କାମ୍ୟ ବୋଲି ସେ ସିଧାସଳଖ ବ୍ରିଟିଶ ପ୍ରତିନିଧିମାନଙ୍କୁ ଶୁଣାଇ ଦେଇଥିଲେ । ତାଙ୍କର ବୁଦ୍ଧିମତାପୂର୍ଣ୍ଣ

ଆଲୋଚନା ଏବଂ ସୌଜନ୍ୟରେ ବ୍ରିଟିଶ ପ୍ରତିନିଧିଗଣ ମୁଗ୍ଧ ହୋଇ ତାଙ୍କ କଥାକୁ ଗୁରୁତ୍ୱ ଦେଇଥିଲେ । ଏହାର ଫଳ ସ୍ୱରୂପ ଦେଶରେ ମୁସଲିମ୍ ଲିଗ୍ ଏବଂ କଂଗ୍ରେସର ମିଳିତ ଉଦ୍ୟମରେ ସରକାର ଗଢ଼ିବା ନିମନ୍ତେ ସ୍ୱୀକୃତ ହେଲା ।

ଦୀର୍ଘ ଛଅବର୍ଷ ପର୍ଯ୍ୟନ୍ତ ମୌଲାନା ଆଜାଦ୍ କଂଗ୍ରେସର ଅଧ୍ୟକ୍ଷ ପଦବୀରେ ରହିଥିଲେ । ଏହି ସମୟ ମଧ୍ୟରେ ସେ ବହୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ଅଂଶ ଗ୍ରହଣ କରି ଅନେକ ଜଟିଳ ସମସ୍ୟାର ସମାଧାନ କରିଛନ୍ତି ।

୧୯୪୭ ମସିହାରେ ଦେଶ ସ୍ୱାଧୀନ ଏବଂ ବିଭାଜନ ହେଲା । ମୌଲାନା ଆଜାଦ ଶିକ୍ଷାମନ୍ତ୍ରୀ ପଦରେ ଦୀର୍ଘ ଏଗାରବର୍ଷ କାଳ ଅଧିଷ୍ଠିତ ହୋଇଥିଲେ । ସ୍ୱାଧୀନତା ପୂର୍ବରୁ ଦେଶର ଶିକ୍ଷା କ୍ଷେତ୍ରର ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଥିଲା । ତାକୁ ସୁଧାରିବା ପାଇଁ ସେ ସାଧ୍ୟମତେ ଉଦ୍ୟମ କରିଥିଲେ । ଉଚ୍ଚଶିକ୍ଷା ସକାଶେ ବିଶ୍ୱବିଦ୍ୟାଳୟ ସ୍ଥାପନ, ଦେଶରେ ପ୍ରାଥମିକ ସ୍କୁଲଠାରୁ ଆରମ୍ଭ କରି କଲେଜ ଶିକ୍ଷାର ପ୍ରବର୍ତ୍ତନ ତଥା ପ୍ରଚୁର ଆଗ୍ରହରେ ସେ ନିଜକୁ ଉତ୍ସର୍ଗ କରିଦେଲେ ।

ଶିକ୍ଷାକ୍ଷେତ୍ରରେ ଧର୍ମଶାସ୍ତ୍ରର ଉପଯୋଗିତାକୁ ସେ ଭଲ-ରୂପେ ହୃଦୟଙ୍ଗମ କରିଥିଲେ । ତେଣୁ ସ୍କୁଲ, କଲେଜରେ ଧର୍ମ-ସାହିତ୍ୟର ପରିପ୍ରଚାର ନିମିତ୍ତ ସେ ଉଦ୍ୟମ କଲେ । ତାଙ୍କ ସମୟରେ ଶିକ୍ଷାକ୍ଷେତ୍ରରେ ଅଦ୍ଭୁତ ଉନ୍ନତି ସାଧିତ ହେଲା । ଦେଶରେ କ୍ରମଶଃ ଶିକ୍ଷିତଙ୍କ ସଂଖ୍ୟା ବୃଦ୍ଧି ପାଇଲା ।

୧୯୫୮ ମସିହା ଫେବୃଆରୀ ୧୮ ତାରିଖ ଦିନ ହଠାତ୍ ମୌଲାନା ଆଜାଦ୍ କର୍ତ୍ତବ୍ୟରତ ଥିବା ସମୟରେ ଅଚେତ ହୋଇ

ପଡ଼ିଗଲେ । ବଡ଼ ବଡ଼ ଡାକ୍ତରମାନେ ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷାକରି ଚୈତନ୍ୟ ଫେରାଇ ଆଣିବାକୁ ଚେଷ୍ଟାକଲେ । କିନ୍ତୁ ଆମ ଦେଶର ତାହା ଏକ ଦୁର୍ଭାଗ୍ୟ ଦିବସ । ୧୯୫୮ ମସିହାର ଫେବ୍ରୁଆରୀ ୨୨ ତାରିଖ ରାତି ଦୁଇଟାବେଳେ ସେ ବେହୋସ୍ ଅବସ୍ଥାରେ ହିଁ ଅମରପୁରୀକୁ ଗମନ କଲେ ।

ତାଙ୍କର ଦେହାନ୍ତ ଫଳରେ ଜଣେ ବିରାଟ ମହାପୁରୁଷଙ୍କୁ ଭାରତୀୟ ଜନତା ହରାଇବା ପାଇଁ ହରାଇଲା । ମୌଲାନା ଆଜାଦ୍ ପ୍ରକୃତରେ ଏ ଦେଶର କର୍ଣ୍ଣଧାର ଥିଲେ । ସେ ଏକାଧାରରେ ଥିଲେ ରାଜନୀତିଜ୍ଞ, ସାହିତ୍ୟିକ, ସୁବକ୍ତା ଶିକ୍ଷାଶାସ୍ତ୍ରୀ, ଦାର୍ଶନିକ ଏବଂ ଧାର୍ମିକ ନେତା । ଇତିହାସର ପୃଷ୍ଠାରେ ତାଙ୍କର ନାମ ଏକ ଉଜ୍ଜ୍ୱଳରତ୍ନ ସଦୃଶ ଚିରଦିନ ଝଟକୁଥିବ ।

———